# ଧର୍ମପଦ



ନବମ ସଂସ୍କରଣ

ପ୍ରକାଶକ




ମୂଲ୍ୟ ଛଅ ଅଣା ମାତ୍ର

# ଭୂମିକା

ବାଲ୍ୟକାଳରୁ କବି ହେବାର ବାସନା ମୋର ବଳବତୀ ଥିଲା । ବାଲ୍ୟସହଜ ଉଦ୍ୟମ ମଧ୍ୟ ସେଆଡ଼େ କିଛି କରିଥିଲି; ମାତ୍ର ଘଟଣା-ତରଙ୍ଗରେ ଇତସ୍ତତଃ ବିକ୍ଷିପ୍ତ ହୋଇ ଚିର ଦିନ ପାଇଁ ସେ ଆଶା ମଉଳିଛି । "ଧର୍ମପଦ" ସେ ଆଶାର ଅଙ୍କୁର ନୁହେଁ; ଏହା ବିକ୍ଷିପ୍ତ ହୃଦୟର ସାମୟିକ ସ୍ପନ୍ଦନ ମାତ୍ର । ବନ୍ଦୀଶାଳର ନିର୍ଜନ ପ୍ରକୋଷ୍ଠରେ ଏକ ସନ୍ଧ୍ୟାରୁ ତହିଁ ଆରଦିନ ସକାଳ ପର୍ଯ୍ୟନ୍ତ ଏକାକୀ ଆବଦ୍ଧ ହୋଇ ଅନେକ ସମୟରେ ଉନ୍ନିଦ୍ରାବସ୍ଥାରେ ଯେସବୁ ଚିନ୍ତା ମନକୁ ଆସୁଥିଲି, "ଧର୍ମପଦ" ତହିଁର ଅନ୍ୟତମ । ଦେଶ ଓ ଦଶ ନିମନ୍ତେ ଆତ୍ମୋତ୍ସର୍ଗରେ କି ସୁଖ ଓ ଗୌରବ ଅଛି, ଉତ୍କଳର ଚିରକଥିତ ଏହି କିଂବଦନ୍ତୀରେ ତାହା ସୁସ୍ପଷ୍ଟ ବିବୃତ ହୋଇଅଛି । ଯଦ୍ଦ୍ୱାରା ସର୍ବାଧିକ ସଂଖ୍ୟକ ଲୋକଙ୍କର ସର୍ବାଧିକ ପରିମାଣରେ ହିତ ହୁଏ, ତାହା ହିଁ ମାନବର କର୍ତ୍ତବ୍ୟ । ନୀତିଶାସ୍ତ୍ରର ଏହି ତତ୍ତ୍ୱ ପ୍ରକାଶ କରିବାର ପ୍ରୟୋଜନ ସ୍ଥଳେ "ବୀର ଶବ୍ଦ ବଢ଼େଇରେ ଦାୟି, କି ପୁଅରେ ଦାୟି"—ଏ କଥା ଓଡ଼ିଶାର ଜନସାଧାରଣ ବ୍ୟବହାର କରିଥାନ୍ତି; ମାତ୍ର ଏଡ଼େ ସୁନ୍ଦର କିଂବଦନ୍ତୀର ଆଖ୍ୟାନ ଉତ୍କଳସାହିତ୍ୟରେ କୌଣସିଠାରେ ଏ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇନାହିଁ । ଏପରି କି ଏଥିର ମୂଳକଥା ଅନେକଙ୍କୁ





ଜଣା ନାହିଁ । ଏ ଜନଶ୍ରୁତି ସମ୍ବନ୍ଧରେ ଲୋକମୁଖରେ ଯାହା କଥିତ ହୋଇଥାଏ, ସେଥିରେ ଶୁଣାଯାଏ ଯେ, ଗୃତିକ ମଧ୍ୟରେ ପୁଅ ଦେଉଳ ପୂର୍ଣ୍ଣ କରିଦେବାରୁ ବାରଶହ ବଢ଼େଇଙ୍କ ଖାତିରରେ ନିଜେ ବାପ ପୁଅକୁ ଦେଉଳ ଉପରୁ ଗଡ଼ାଇଦେଇ ମାରି ପକାଇଥିଲା; ମାତ୍ର ଏହା ଅସ୍ୱାଭାବିକ—ଏପରି କରିବାକୁ କୌଣସି ବାପର ହାତ ଯିବ ନାହିଁ; ପ୍ରବୀଣ ବିଶାରଦ ବାରଶତ ଶିଳ୍ପୀ ଏପରି କାର୍ଯ୍ୟରେ ବାପାକୁ ଅନୁରୋଧ କରିବା ଅସଙ୍ଗତ । ବିଚକ୍ଷଣ ବାରଶହ ବଢ଼େଇ ଯେ କାର୍ଯ୍ୟ କରିବାକୁ ଅସମର୍ଥ, ବାର ବର୍ଷର ବାଳକ ପକ୍ଷରେ ତାହା ସମ୍ପାଦନ କରିବା ଅସାଧ୍ୟ ହୋଇପାରେ; ମାତ୍ର ଅସମ୍ଭବ ନୁହେ । ମାନବ-ସମାଜରେ ଏପରି ଅଦ୍ଭୁତ ଶକ୍ତି ଓ ପ୍ରତିଭା ମଧ୍ୟେ ମଧ୍ୟେ ପ୍ରକାଶ ପାଇଥାଏ । ଧ୍ରୁବ, ପ୍ରହ୍ଲାଦ, ଏକଲବ୍ୟ, ଶୁକ, ଅଭିମନ୍ୟୁ ପ୍ରଭୃତି ପୁରାଣର କଥା; ଶଙ୍କରାଚାର୍ଯ୍ୟ, ବାଦଲ ପ୍ରଭୃତିଙ୍କ ଅଦ୍ଭୁତ ପ୍ରତିଭା ଐତିହାସିକ ସତ୍ୟ । ଆଜିକାଲି ଯୁଗରେ ମଧ୍ୟ ଏଭଳି ଘଟଣାର ଏକାବେଳକେ ଅଭାବ ଦେଖାଯାଏ ନାହିଁ । ସଂପ୍ରତି ବ୍ରହ୍ମଦେଶରେ ପାଞ୍ଚ ବର୍ଷର ଗୋଟିଏ ବାଳକ ଧର୍ମ ବିଷୟକ ନାନା ଗୂଢ଼ତତ୍ତ୍ୱ ପ୍ରଚାର କରୁଅଛନ୍ତି । ତାଙ୍କ ମାହାତ୍ମ୍ୟ ଓ ପ୍ରତିଭା ଦେଖି ଶତ ଶତ ଲୋକ ତାଙ୍କର ଅନୁଗାମୀ ହେଉଅଛନ୍ତି । ଏପରି ଅସାମାନ୍ୟ ଓ ଅଲୌକିକ ପ୍ରତିଭା ଦେଖିଲେ "ଧର୍ମପଦ"ଙ୍କୁ କିଂବଦନ୍ତୀର ଅମୂଳକ



କଳ୍ପନା ବୋଲି କିଏ କହିପାରେ ? ଏକ ସମୟରେ ଶିଳ୍ପ ଓ ସ୍ଥାପତ୍ୟ ଉତ୍କଳରେ ଯେପରି ଉନ୍ନତିର ପରାକାଷ୍ଠା ଲାଭ କରିଥିଲା, ସେଥିରେ ଏଭଳି ବାଳକର ଆବିର୍ଭାବ ସ୍ୱାଭାବିକ ମନେହୁଏ ।

"ଧର୍ମପଦ"ରେ କାବ୍ୟକଳାର କୁଟିଳତା ବା ଶିଳ୍ପର ସୌକୁମାର୍ଯ୍ୟ ନିମନ୍ତେ ପ୍ରୟାସ ହୋଇନାହିଁ । ଏହି କିଂବଦନ୍ତୀର ଅବଲମ୍ବନରେ ଖଣ୍ଡିଏ ଉପନ୍ୟାସ ଲେଖିବାକୁ ମନେ ବିଚାରୁଥିଲି । ମାତ୍ର ତାହାର ଆକାର ଦୀର୍ଘ ହେବ ଏବଂ ତାହା ସମୟ ଓ ଧୈର୍ଯ୍ୟସାପେକ୍ଷ । କାରାଗାରରେ ମୋ ପରି ସାଧାରଣ ପ୍ରକୃତିର ଜଣେ ବନ୍ଦୀ ପକ୍ଷରେ ସେପରି ଧୈର୍ଯ୍ୟ ଓ ମନୋଽଭିନିବେଶ ସହଜ ନୁହେ । ତେଣୁ ସେ କଳ୍ପନା ଛାଡ଼ି ବାଲ୍ୟ ଅଭ୍ୟାସର ବଶବର୍ତ୍ତୀ ହୋଇ କେବଳ ପଦ ମିଳାଇ "ଧର୍ମପଦ" ଓ ସେହିପରି ଅନ୍ୟାନ୍ୟ କେତେକ ପଦ୍ୟ ଲେଖି କାରାର କରାଳ ନିର୍ଜନତାରେ ଆତ୍ମପ୍ରସାଦ ଲାଭ କରୁଥିଲି । କବିତାର ମୋହନ ମାଧୁରୀରେ ଆକୃଷ୍ଟ ନ ହେଲେ ହେଁ ନିର୍ଜନବନ୍ଦୀର ନିଭୃତ ବିକ୍ଷିପ୍ତ ପ୍ରାଣର ସ୍ପନ୍ଦନରେ ସହାନୁଭୂତି କରି "ଧର୍ମପଦ" ପଢ଼ିବାଦ୍ୱାରା ଉତ୍କଳବାସୀ ନିଜ ଜାତୀୟ ଗୌରବରେ କ୍ଷଣକ ଲାଗି ଅନୁପ୍ରାଣିତ ହେଲେ ପରମ ପ୍ରୀତି ଓ ଆହ୍ଲାଦ ଲାଭ କରିବି । ଇତି ।

**ଗୋପବନ୍ଧୁ ଦାସ**

# ଧର୍ମପଦ

(୧)

ବାର ବରଷର ବାଳୁତ ପୁଅ ସେ
ବୁଦ୍ଧିମନ୍ତ ସୁକୁମାର,
ଦେଖି ନାହିଁ କିବା ଶୁଣି ନାହିଁ କେବେ
କିଏ ସେ ବାପ ତାହାର ।

ଜନନୀ-କୋଳରେ ବଢ଼ିଛି ଖେଳରେ
ଆଜନମୁଁ ଅତି ସୁଖେ,
ମଅ ବୋଲି କେବେ ମାଛିକ ବୋଲିବା
ଆଣିନାହିଁ ହେଲେ ମୁଖେ ।

ସ୍ୱାମୀଙ୍କ ବିରହ [illegible] ଭୁଲିଛନ୍ତି ମାତା
ପୁଅ-ବଦନ ଅନାଇଁ,
ଦେହରେ ଟିକିଏ ପଡ଼ିଗଲେ ଧୂଳି
ସହି ନ ପାରନ୍ତି ଗୃହିଁ ।

ଶଇଶବ କାଳୁଁ କୁଳ-କାରିଗର
ଶିଖାନ୍ତି ଅତି ଯତନେ,
ଯାହା ଦେଖେ ଶୁଣେ ସ୍ମୃତିଧର ପରି
ସବୁ ସେ ରଖଇ ମନେ ।

ଶିଶୁଗଣ ମେଳେ, ବାଲିଧୂଳି ଖେଳେ
କରେ କେତେ ନବ ସୃଷ୍ଟି,
ତୋଳଇ ଦେଉଳ ଗଢ଼ଇ ଅଟ୍ଟାଳୀ
ଧନ୍ୟ ବିଚକ୍ଷଣ ଦୃଷ୍ଟି ।

ଦେଖି କାରିଗର ତା କଳାଚାତୁରୀ
ଆଶ୍ଚର୍ଯ୍ୟ ମଣନ୍ତି ଜନେ,
କହନ୍ତି, "ଆୟୁଷ ଥିଲେ ଏ ପିଲାଟି
ହେବ କେତେ ଲୋକେ ଜଣେ ।"

ପଚାରଇ ପୁଅ ଯେବେ ଶିଳ୍ପତତ୍ତ୍ୱ
କହନ୍ତି ମାତା ଉତ୍ତରେ,
"ପଢ଼ିଲେ ଜାଣିବୁ ସବୁ ଆରେ ଧନ
ପୋଥି ଅଛି ଆମ ଘରେ ।"

ପାଞ୍ଚ ବର୍ଷ ବେଳେ, ଗ୍ରାମ ଚାଟଶାଳେ
ଓଳିଆ ଛୁଆଁଇଲେ ଖଡ଼ି,
ଛୁଆଁ ଛୁଆଁ ପୁଅ ଅଳପ ଦିନରେ
ଗଲା ସବୁ ପାଠ ପଢ଼ି ।

ଗୀତା ଭାଗବତ ପୁରାଣ ଚରିତ
ହୋଇଲା ଅଭ୍ୟାସ ତାର,
ଦେବାଳୟ ତୋଳା ପୁଷ୍କରିଣୀ ଖୋଳା
ହିସାବ ଯେତେ ପ୍ରକାର ।

ସଙ୍ଗ ଗୃହେ କେତେ ସହି ନ ପାରନ୍ତି
ଆନେ କରନ୍ତି ଆଦର,
ସମସ୍ତଙ୍କଠାରେ ସମ ସ୍ନେହ ତାର,
ନାହିଁ କେହି ପରାପର ।

ଗୃହାଳରୁ ଆସି ଘରେ ଶିଳ୍ପଶାସ୍ତ୍ର
ପଢ଼େ କରି ଏକ ଲକ୍ଷ୍ୟ,
କାଠ ପାଷାଣରେ ଗଢ଼ଇ ମୂରତି
କେତେ ରଥ, ଦେବାଳୟ ।

ଦିନେ ଗୃହାଳୀରୁ ଫେରିଆସି ପୁଅ
ଉଭା ହେଲା ମାତା ପାଶେ;
ଆଖି ଥନଥନ, ବଦନ ମଳିନ,
ତୁଣ୍ଡରେ କଥା ନ ଆସେ ।

ପୁଅକୁ ଅନାଇ ମାତା ଅତି ଛନ୍ନେ
ପଚାରନ୍ତି ବେଗେ ଦୁଃଖେ,
"କପାଇଁ ରେ ଧନ ବିରସ ତୋ' ମନ,
ହସ ନାହିଁ କମ୍ପା ମୁଖେ ?

ଗୃହାଳୀରୁ ଫେରି ଆନ ଦିନ କହୁ
ହରଷରେ କେତେ କଥା,
ଆଜି ତୋ ଏ ରୀତି ଦେଖି ମୋର ଛାତି
ଲାଗୁଛି ପରାଣେ ବ୍ୟଥା ।

ଦେଇଛନ୍ତି ଦଣ୍ଡ                    ଅବଧାନେ ଅବା
ଗାଳିଦେଲେ ଆନ ଗୃହେ,
ସ୍ନାନମାନ କର                    କିଏ କି କହିଲା
କବାଁ ଦାଣ୍ଡେ ବାଟେ ଘାଟେ ?

ଫେଡ଼ି କହ ବାବୁ,                    ଘଟିଛି ଯା ସବୁ
ଭୁଟୁ ମୋ ମନୁଁ ସନ୍ଦେହ,
ମୁଁ ତ ଜାଣେ ତୋର                    ଗୁଣ ଆଚରଣେ
ସମସ୍ତେ କରନ୍ତି ସ୍ନେହ ।

କାନ୍ଦ କାନ୍ଦ ହୋଇ                    କପାଇଁ ରେ ବାଇ
କଥା ନ ଆଣୁଛୁ ମୁଖେ ?
ନ ଜାଣୁ କି ବାବୁ,                    ତୋ ଏ ଭାବ ଦେଖି
ବଜ୍ର ପଡ଼ଇ ମୋ ବୁକେ !

ଲକ୍ଷେ ଦେବଦେବୀ—                    ପାଦ ସେବି ସେବି
ପାଇଛି ରେ, ତତେ ଧନ !
କେତେ ମରି ମରି                    ରକ୍ଷଣୀ ସଙ୍ଖାଳି
ତୁ ମୋର ଜୀବ-ଜୀବନ ।

ତତେ ଗୃହେଁ ସିନା                    କାଟୁଛି ମୁଁ ଦିନ
ଏକାକିନୀ ଏତେ କାଳ,
କହ ମନକଥା                    ତୁମା କୁଳ-ଚନ୍ଦ୍ରମା
ଭିକାରିଣୀ ଗଳାମାଳ ।"

ମାତା ଆଶ୍ୱାସନା ପାଇ ପଚ୍ଛେ ପୁଅ
ତେଜିଣ ମନୁଁ ସନ୍ତାପ,
"କହ ମା, ସତେ କି ଅଛୁ ଆମ କୁଳ
କହ କିଏ ସେ ମୋ ବାପ ?"

କହନ୍ତି ଜନନୀ, "କେବେ ତ ଏ କଥା
ପଚ୍ଛରି ନ ଥିଲୁ ଥରେ,
ଚାହାଳୀରୁ ଆସି କଣ୍ଟା ବାବୁ ଆଜ
ପଚ୍ଛୁରୁ ଏଡ଼େ କାତରେ ?"

କହେ ପୁଅ, "ଆଜ ଚାହାଳୀରେ ଚାଟେ
କହିଲେ ମତେ ଯେ କଥା,
ଲାଜ ଅପମାନେ ଗଲି ମୁହିଁ ସଢ଼ି
ଟେକି ନ ପାରିଲି ମଥା ।

ଚାହାଳୀରେ ଯେବେ ଲେଖୁଥିଲି ପାଠ
ଗୋଟାଳ ମୋ ଗଲା ଗଡ଼ି,
ନିକଟ ପିଲାକୁ କହିଲି ହେ ଭାଇ,
ବଢ଼ାଇ ଦିଅ ଟସେ ଖଡ଼ି ।

ମୋ କଥାରେ ସେ ତ ଦେଲା ନାହିଁ ଖଡ଼ି,
କରି କଲା ଉପହାସ !
'ଭାଇ ଡାକ ଆଜ୍ଞା— ଦିଏ ଅବାବୁଆ
ଏହାର କେଡ଼େ ସାହସ !

ନ କହଣ କଚ୍ଛୁ ଅଲପେ ହସିଲେ
ତହିଁ ଆନ ପିଲମାନେ,
ଲଜେ ମଥା ପୋତି ଗୋଡାଳି ଉଠାଇ
ଆଣି ବସିଲ ମୋ ଥାନେ ।

ନ କର ସଙ୍କୋଚ ଫେଡ଼ି ସତ କହ
ଛୁଇଁକର ଏ ମୋ ଦେହ,
ଆମ କୁଳକଥା, କାହାନ୍ତି ମୋ ପିତା,
ଯାଉ ମୋ ଭ୍ରମ ସନ୍ଦେହ ।"

କୋପେ ଜରଜର ଜନମା ସଭର
ହାସନ୍ତି ଉତେ ବଚନ,
"କଏ ସେହୁ ପିଲ ଦେଲ ଏହ୍ୱପର
ଅପମାନ ଅକାରଣ ?

ତା ମା' ଏତେଡ଼େ ସଖ, ମୋ ପୁଅକୁ ପୁଣି
କହେ ସେ ଅଣବାବୁଆ,
ତା କଥାରେ ଛଳ କର କିବା ଫଳ
ସେ ଜ୍ଞ ତ ଅଜ୍ଞାନ ଛୁଆ ।

ବୁଢ଼ା ବୁଢ଼ୀମାନେ କହୁଥାନ୍ତି ଯାହା
ଶୁଣିଛୁ ମୁଁ ପିଲବେଳେ,
ପୂରୁବ ପୁରୁଷ ଯଶ ପଜରୁଷ
ବୁଝି ବାବୁ ଏଥୁଁ ହେଲେ ।

ସୃଷ୍ଟି ଆଦ୍ୟକାଳୁଁ ବିଶ୍ୱକର୍ମା, ତାହୁଁ
ଆମ କୁଳ ଉତପତ୍ତି,
ଏ କୁଳର ବଢ଼ୁ— ବଡ଼େ ରଖିଛନ୍ତି
କେତେ ଅକ୍ଷୟ କୀରତି ।

ଇନ୍ଦ୍ରଦ୍ୟୁମ୍ନ ରାଜା ତୋଳାଇଲେ ଯେବେ
ଶ୍ରୀକ୍ଷେତ୍ରେ ବଡ଼ ଦେଉଳ,
ହକାରଣ ନାନା ଦେଶୁଁ କାରଗର
କରାଇଲେ ଆଗେ ଠୁଳ ।

ପରଖି ସକଳେ ଯୋଗ୍ୟ ଶିଳ୍ପୀ ବାଛି
ଲଗାଇଥିଲେ ସେ କାମ,
ତୋ ପୂର୍ବପୁରୁଷେ— ଶିରେ ଦେଲେ ଶାଢ଼ୀ
ପୁଣ୍ୟ ନୀଳାଚଳଧାମେ ।

କେତେ କାଳ ଅନ୍ତେ ସେ ମନ୍ଦିର ଯେବେ
ସଂସ୍କାର କଲେ ଯଯାତି,
ତୋ ପୂର୍ବପୁରୁଷେ ସେତେବେଳେ ତହୁଁ
ରଖିଥିଲେ ବଂଶ-ଖ୍ୟାତି ।

ଶେଷେ ସେ ଦେଉଳ ତୋଳାଇଲେ ପୁଣି
ଶ୍ରୀ ଅନଙ୍ଗଭୀମ ରାଏ,
ଉତ୍କଳେ ଅକ୍ଷୟ କୀର୍ତ୍ତିସ୍ତମ୍ଭ ପ୍ରାଏ
ଶୋଭେ ଯାହା ଆଜଯାଏ ।

ତୋ ପୂର୍ବପୁରୁଷ— ବୁଦ୍ଧି କାରିଗର
ରହିଅଛି ତହିଁ ଜାଣ,
ଏଥିରୁ ରେ ବାବୁ ବୁଝ ତୁ ଆପଣା
ବଂଶବଡ଼ିମା ପ୍ରମାଣ ।

ଖଣ୍ଡଗିରି-ଦେହେ ବିରଚିଲେ ଗୁମ୍ଫା
ଏହି ବଂଶ-କାରିଗରେ,
ଯହିଁ ଖାରବେଳ— ଶାସନ-ନିଦେଶ
ରଚିଲେ ଅମର ଅକ୍ଷରେ ।

ରାଣୀହଂସପୁରେ ଶେଷ ଜୀବନରେ
ରାଣୀ ସଙ୍ଗେ ନରପତି,
ଯୋଗିଜନ ମେଳେ ରହିଲେ ନିଷ୍ଠଳେ
ତେଜି ରାଜ୍ୟ ହେଲେ ଯତି ।

ବୈତରଣୀ-କୂଳେ ଯଯାତିକେଶରୀ
କଲେ ଯେବେ ମହାଯାଗ,
ସରଗୁଁ ଦେବତା ଆସିଥିଲେ ତହିଁ
ନେବା ଲଗି ଯେଝା ଭାଗ ।

ବନ ପରବତେ ବୈତରଣୀ-ସ୍ରୋତେ
ହେଲା ବେଦ ପ୍ରତିଧ୍ୱନି,
ଯଜ୍ଞ-ଅନଳରୁ ଉଠିଲା ବିରଜା
ଉତ୍କଳ ଯେବେ ଅବନୀ ।

ଗଢ଼ିଲେ ଯେ ଶିଳ୍ପୀ ପୁଣ୍ୟ ଶୁଭସ୍ତମ୍ଭ
ସପ୍ତମାତୃକା ମୂରତି,
ନ କର ସଂଶୟ ଜାଣ ଆପଣାକୁ
ତାଙ୍କର ବଂଶ-ସନ୍ତତି ।

ଏକାମ୍ର କାନନେ ଲଲାଟେନ୍ଦୁ-କୀର୍ତ୍ତି
ଅନୁପମ ଦେବାଳୟ,
ନିର୍ମିଲେ ଯେ, ତାଙ୍କ ରକ୍ତ ତୋ ଶରୀରେ
ତୁ ତାଙ୍କ କୁଳ-ତନୟ ।

ବାରବାଟି ଦୁର୍ଗ ମରାମତି ଲାଗି
ଶଙ୍କୁରେ ଗଲେ କଟକ,
ଯଥାକାଳେ କାମ ନ ସରିଲା ବୋଲି
ରହିଲେ ତହିଁ ଅଟକ ।

ବାହୁଡ଼ି ନାହାନ୍ତି ଘରକୁ ସେ ଆଉ
କଟକେ ତେଜିଲେ ପ୍ରାଣ,
ସେହି ଭାବନାରେ ମଲେ ଶାଶୁ ମୋର
ଶୋକେ ହୋଇ ହତଜ୍ଞାନ ।

ଯେଉଁ ଦିନୁ ତୋର ବାପା ଯାଇଛନ୍ତି
ଘର ଛାଡ଼ି ପରବାସ,
ମୋ ଦେହରୁ ବାବୁ ଶୁଖିଛି ରକତ
ନାହିଁ ମୋ ଜୀବନେ ଆଶ ।

ଦିନେ ଗଲେ ମତେ ଯୁଗ ପରି ଲାଗେ
ଝରୁଛି ମୁଁ ଘାଳ ଘାଳ,
ରହିଅଛି ସିନା ତୋ ମୁହଁ ଅନାଇଁ
ତୁ ମୋ ନୟନ-ସଙ୍ଖାଳି ।"

ଏହିପରି କଥା କହୁଁ କହୁଁ ମାତା
ହୋଇଲେ ଅତି ବିକଳ
ତଳେ ମୁହଁ ପୋତି ବାଳଫିଲେ ସତି
ବହେ ଅଶ୍ରୁ ଅବିରଳ ।

"କପାଇଁ କହ ମା, କାନ୍ଦୁଛୁ କାତରେ"
ଚକିତେ ପଚାରେ ପୁଅ,
ବସି ମାତାକୋଳେ ବସନ ଅଞ୍ଚଳେ
ପୋଛେ ତାଙ୍କ ନେତ୍ର ଲୁହ ।

"କାହାନ୍ତି ମୋ ବାପ, କେତେ ଦିନ ହେଲା
କି କାର୍ଯ୍ୟେ ଗଲେ ସେ କାହିଁ ?
କେତେ ଦୂର ପଥ ଏଥୁଁ ସେ ରାଇଜ
ମୁଁ କି ନ ପାରିବି ଯାଇ ?

ନ ଅସେ କି ତହୁଁ ବାରତା ଏଠାକୁ
ଅଛନ୍ତି ଟିକି ସେ ଭଲେ ?
ଯିବାର ଉପାୟ କହ ମା ତୁରିତେ
ବାର୍ତ୍ତା ଆଣିବି ମୁଁ ଗଲେ ।"

ପୁଅର ମଧୁର କୋମଳ ବଚନେ
ମାତା ପାଇଲେ ଆଶ୍ୱାସ,
ଚୁମ୍ବି ପୁତ୍ରମୁଖ କହନ୍ତି ଆହ୍ଲାଦେ
ପକାଇ ଦୀର୍ଘ ନିଶ୍ୱାସ ।

"ମରିଯାଏଁ ମୁଁ ଲୋ, କି ବକିଲେ ଲୁହ
ପୋଛି ଦିଅଇ ମୋ ଧନ,
ଏହି ଭରସାରେ ବାର ବର୍ଷ ହେଲା
ରହିଛି ଧରି ଜୀବନ ।

ବାର ବର୍ଷ ହେଲା ଯାଇଛନ୍ତି ବାପ
ଦେଉଳ ଗଢ଼ିବା ପାଇଁ,
ତୋଳାଉଛନ୍ତି ଯା ନରସିଂହ ଦେବ
ଗଜପତି ନରସାଇଁ ।

ଚନ୍ଦ୍ରଭାଗା ତୀର୍ଥେ ସାଗର-ପନ୍ତାରେ
ଗଢ଼ାହେଉଛି ଦେଉଳ;
କହିଛନ୍ତି ରାଜା, 'କଳା-କଉଶଳେ
ହେବଶ୍ଚେ ସେ ହେବ ଅତୁଳ ।'

ଶିବାଇ ସାଆନ୍ତ୍ର ପୂରତ ପଧାନ
ବିଶ୍ୱକର୍ମା-କୁଳ ରାଇ,
ଭଲ କାରିଗର ବାଛି ଲଗାଇଲେ
କାମେ ବାରଶ ବଢ଼ାଇ ।

ସେଓ୍ଵ ଡାକଘରେ ଗଲେ ଯେ ତୋ ପିତା
କ୍ଷାତ୍ରଙ୍କ ନାହାନ୍ତ ଘରେ,
ସେତେବେଳେ ତୁ ମୋ ଗର୍ଭେ ଷଷ୍ଠ ମାସ,
ଜନ୍ମିଲୁ ଛ ମାସ ପରେ ।

କହୁଥିଲେ ଲୋକେ ହେବ ସେ ଦେଉଳ
ଧର୍ମଦେବତାଙ୍କ ରଥ,
ପୂର୍ବେ ଦୁର୍ଗ ରୂପେ ଉତ୍କଳର ପୁଣି
ଓଗାଳବ ସିନ୍ଧୁ-ପଥ ।

ଧର୍ମଦେବତାଙ୍କ ଦେଉଳରେ ବାସ
କରୁଛନ୍ତି ବୋଲି କାମ,
ସୁମରଣ ତାଙ୍କୁ ଶରଧାରେ ଦେଲି
ଧର୍ମପଦ ତୋର ନାମ ।

ଦେଖି ନାହିଁ ତୀର୍ଥ ଶୁଣିଛି କେବଳ
'ସାତ ଥର ଯିବ ଗଙ୍ଗା,
ଥରେ କେଓ୍ଵ ଯେବେ ଯିବ ଚନ୍ଦ୍ରଭାଗା
ମୁହଁ ପଡ଼ିଯିବ ଭୁଙ୍ଗା ।'

ଯିବା ଦିନୁଁ ବାପ ବାର ବର୍ଷ ହେଲା
ପାଇ ନାହିଁ ମୁଁ ବାରତା,
ତାଙ୍କ ଲାଗି ନିତ ପହ୍ନାଇ ବସାଇ
ପୂଜଇ ପଣ୍ଡ-ଦେବତା ।

ଅଖଣ୍ଡଳ ଜାଳ ଗ୍ରାମଦେବତାଙ୍କ
ପାଦେ ପଡ଼େ ଅନୁକ୍ଷଣ,
ରବିବାର-ବ୍ରତ ପାଳି ମୁଁ ପଶିଛୁ
ଧର୍ମଦେବତା ଶରଣ ।"

କହେ ପୁଅ ତହୁଁ, "ଯିବ ଚନ୍ଦ୍ରଭାଗା,
କରିବ ବାପାଙ୍କୁ ଦେଖା;
ଆଣିବ ତାଙ୍କରି କୁଶଳ ବାରତା
ତାଙ୍କ ନିଜ ହାତଲେଖା ।"

"ମୋ ନେତ୍ରପିତୁଳି, ଗୁଡ଼ି କରେ ତତେ
ପାରିବ ମୁଁ କ୍ଷଣେ ବଞ୍ଚି ?
ମୋ ଅନ୍ଧାର ଘରେ ତୁ ଏକା ପ୍ରଦୀପ
ମୋ ହୃଦ-ସିନ୍ଦୁକ-କଞ୍ଚି ।

ଆହୁରି ତୁ ମୋର ଜୀବନ-ବୋଇତେ
ଅନ୍ଧର ଆଶ୍ରା-ଲଉଡ଼,
ତୋ ବିନେ ନ ଚଳି ଯିବ ସିନା ବାବୁ
ଶୋକ-ସିନ୍ଧୁ-ଜଳେ ବୁଡ଼ି ।"

କହେ ପୁଅ ପୁଣି ବଳାଇ ସାଦରେ
"ଯିବି ନିଶ୍ଚେ ବାପ ପାଶ,
ମନ ତୋଷେ ମା ଗୋ ! ଦିଅ ଅନୁମତି
ଫେରିବ ନ ପୂରୁ ମାସ ।

ବାପ ସଙ୍ଗେ ତୁହି    ଦେଖିବୁ ସୁଯୋଗ୍ୟ
ଜାତିପୁଅ ଶତ ଶତ,
ଦେଖିବୁ କପରି    ଗଢ଼ା ହେଉଅଛି
ଧର୍ମଦେବତାଙ୍କ ରଥ ।

ଚନ୍ଦ୍ରଭାଗା ତୀର୍ଥେ    ସ୍ନାନ କରି ସୁଖେ
ଦେଖିବୁ ସୂର୍ଯ୍ୟ-ଉଦୟ,
କରି ନାହିଁ ଭୟ    କହ ମା, ବାପାଙ୍କୁ
ଦେବି ମୁଁ କି ପରିଚୟ ?"

କହନ୍ତି ମା, "ବାବୁ,    ଯିବା ଲାଗି ଯେବେ
କରିଅଛୁ ଦୃଢ଼ପଣ,
କିମ୍ପା ନିବାରିବି,    ନିବାରଣେ ସିନା
ହେବ ତୋ ମନେ କଷଣ ।

ଦେଖି ବାପ ତତେ    ହେବେ ହରଷିତ
ହୃଦେ, ତୁ ଯିବୁ ପରତେ,
ଦେଖିବୁ ଆବର    ଓଡ଼ିଆ-ଶିଳ୍ପୀର
ଅଦ୍ଭୁତ କର୍ମ ଜଗତେ ।

ବୟସରେ ତୁହି    ହେଲେ ହେଁ ବାଳୁତ
ବୁଦ୍ଧି ତୋର ସୁକୁମାର;
ବୁଝାଇ ବିଶେଷେ    କହିବି ମୁଁ କିସ ?
କରି ଯାହା ତୋ ବିଚାର ।"

କହିଲେ ଆଦର          ବାପ ନାମ ତାର
ଭୂମିରେ ସେ ଦେଇ ଲେଖି,
"ବାପ ପୁଅଙ୍କର          ହେବ ଚିହ୍ନାଚିହ୍ନି
ହେବା ମାତ୍ରେ ଦେଖାଦେଖି ।

ତୋ ରୂପ ଆକୃତି          ପିତୃ-ପ୍ରତିକୃତି
ଏକା ଛାଞ୍ଚେ ଯେହ୍ନେ ଢଳା,
ନେତ୍ରେ ନାସା ଆସ୍ୟ          ଲଲାଟେ ପ୍ରକାଶ
ବାପ-ମୁଖ ଷୋଳକଳା ।

ନୟନେ ନୟନ          ହେଲେ ଭେଟାଭେଟି
ହେବ ପରାଣ ମିଳନ,
ସେ ଯାହାଙ୍କେ ତାକୁ          ଲୋଡ଼େ ସେ ସହଜେ
କରିବାକୁ ଆଲିଙ୍ଗନ ।

ତଥାପି ନ ବଳେ          ମନ ତଳେ ଏକା
ଭୁଞ୍ଜିବାକୁ ଏତେ ଦୂର"
"ନ ଡର ଡେଲି ବୋଉ          ସଙ୍ଗେ ପିନ୍ଧି ମୋର
ଘର ବଳିଆ କୁକୁର ।

ବଳିଆ ବାପାଙ୍କୁ          ନ ଚିହ୍ନିଲେ ତାକୁ
ବାପା ଚିହ୍ନିବେ ନିଶ୍ଚୟ,
ଗ୍ରାମ ନାମ ମୋର          ଜନମ-ବୃତ୍ତାନ୍ତ
କହିଦେବ ପରିଚୟ ।"

"ମରଯାଏ ଆହା ମୋ ଧନମାଳୀର
କେଡ଼େ ବୁଦ୍ଧି କ ସାହସ !
ଜଗନ୍ନାଥେ କୃପା— କଲେ ତୁ ରଖିବୁ
କୁଳ-ଗଉରବ ଯଶ ।"

( ୨ )

ତ୍ରୟୋଦଶୀ ତିଥି ଶୁଭବେଳ ଦେଖି
ପୁଅ କଲା ଅନୁକୂଳ,
ଜାଗୁଳାଇ ପୂଜ କାନରେ ଜନନୀ
ବାନ୍ଧିଲେ ପ୍ରସାଦ-ଫୁଲ ।

ସ୍ୱାମୀ ଲାଗି ପୁଣି ବାଡ଼-ବରକୋଳି
ଦେଲେ ପାଉଁଜରେ ବାନ୍ଧି,
କହିଲେ, "ଏଥିରେ ବାପାଙ୍କ ଶରଧା
ନେବୁ ପଚନେ ସମ୍ବାଦ ।

କଳିଆ ସଙ୍ଗତେ ବାଡ଼-ବରକୋଳି
ହେବ ଆନ ପରିଚୟ,
ଲକ୍ଷ୍ମୀ ନରସିଂହ ଶ୍ରୀଦୁର୍ଗା 'ମାଧବ
ହୁଅନ୍ତୁ ତୋର ଆଶ୍ରୟ ।"

ବୀର ଧର୍ମପଦ ମାତା ଆଶୀର୍ବାଦ
ଘେନ ହୋଇଲା ବାହାର,
ଯାଏ ପୂର୍ବ ମୁଖେ ବଳିଆ କୁକୁର
ଗଲେ ପଛେ ପଛେ ତାର ।

ଅପନ୍ତରା ବାଟ କେତେ ବେଣାପାଟ
ବନ ବିଲ ନଦୀ ସର,
ଗଲେ ଧର୍ମପଦ ନ ଗଣି ବିପଦ
ଦିବା ନିଶି ନିରନ୍ତର ।

ଗୁଡ଼ିକଙ୍କ ପଛେ ଗୋଡ଼ାଏ ଉତ୍ସାହେ
ବଳିଆ ଧାଇଁ ତା ପଛେ,
ଚନ୍ଦ୍ରଭାଗା-ଯାତ୍ରୀ ଧର୍ମପଦ ବୋଲି
ଲେଖେ କାହିଁ ବାଟ ଗଛେ ।

ପଥର ପଥର ଚନ୍ଦ୍ରଭାଗା ତୀର୍ଥେ
ହେଲା ଯାଇଁ ପରବେଶ,
ଲାଗିଛନ୍ତି ଯହିଁ ବାରଶ ବଢ଼ାଇ
ବିଶ୍ରାମ ନାହିଁ ନିମେଷ ।

ଦିନ ରାତି ଯହିଁ ଜଣା ନ ପଡ଼ଇ
ମୁଖରିତ ନିରନ୍ତର,
ଭୋଜନ ଶୟନ ଛାଡ଼ି ଲାଗିଛନ୍ତି
ପ୍ରାଣପଣେ କାରିଗର ।

( ୩ )

ବାର ବରଷର ସରଳ ବାଳକ
ସେ ଅଚହ୍ନା ସ୍ଥାନେ ଏକା,
ଚକତେ ଚୌଦିଗେ ଅନାଇଁ ଚାହୁଁଛ
ବାପର ନ ପାଇ ଦେଖା ।

ଭାବୁଚରେ, "କାହାକୁ ପଚାରିବ ଏଥି
କିଏ ବା ଦେବ ଉତ୍ତର,
ସର୍ବେ କର୍ମେ ରତ ଏକକୁ ଆରେକ
ବୁଝିବାକୁ ନାହିଁ ତର ।"

ଅବସର ବୁଝି କୋଳି କିଣି ବ୍ୟାଜେ
ବୁଲେ ସେ ଜନଗହଳେ,
ରସାଳ ପୃଥୁଳ ସେ ବଦରି ଫଳ
ଯେ ଦେଖେ ତା ମନ ଟଳେ ।

ଜଣେ କେଉଁ ଶିଳ୍ପୀ ଘର କଥା ଭାବି
ମରମେ ଆହତ ଅତି,
କହେ, ''ମୋ ବାଡ଼ିରେ ଫଳୁଥିବ ଆହା !
କେତେ କୋଳି ଏହି ମତି ।"

କୋଳବଙ୍କା ପିଲା— ମୁହଁକୁ ଅନାଇଁ
କିଛି ନ ପାରଇ କହି,
ନ ଜାଣେ ଅପୂର୍ବ ବାତ୍ସଲ୍ୟ-ମମତା
କପାଁ ହୃଦେ ଉପୁଜଇ ।

ବାଳକ ବଚନ ଶୁଣି କୁତୂହଳେ
ପୁଲକେ ପୂରେ ପରାଣ,
କୁକୁରକୁ ଦେଖି ଅନ୍ତର ଇଙ୍ଗିତେ
କରେ ସେ ସତ୍ୟ ପ୍ରମାଣ ।

ଗ୍ରାମ ନାମ ଆଦି ପଚ୍ଛରି ପାଇଲା
ଯେବେ ପୂର୍ବ-ପରିଚୟ,
ବାଳକ-ବଦନ ଚୁମ୍ବିଲା ସେନେହେ,
ଚରଣେ ନମେ ତନୟ ।

ବାପ ପୁଅ ବେନି ଗଲେ ବସାଘରୁ
ପଚାରିଲେ କେତେ କଥା,
କହେ ଶିଳ୍ପୀ, "ବେଗେ ଯାଉଛି କାମକୁ
ନ ଗଲେ ନ ରହେ ମଥା ।"

'କପାଁ ଏ ଉଦ୍‌ବେଗ ?' ପାଇ ମନେ କ୍ଷୋଭ
ସୁରୁରେ କାତରେ ପୁଅ,
ବୃଦ୍ଧ ଶିଳ୍ପୀ ମୁଖେ ବଚନ ନ ଫୁଟେ
ନୟନୁ ବହଇ ଲୁହ ।

ଷଣକ ଅନ୍ତରେ   କହେ ବୃଦ୍ଧ ପୁଣି
"ଥିଲା ମୋ ପୂର୍ବ ସୁକୃତ,
ଅନ୍ତକାଳେ ତୋତେ   ଦେଖି ଏଥି ବାବୁ
ହେଲି ଏବେ କୃତକୃତ୍ୟ ।

ବାର ବର୍ଷ ହେଲା   ଲଗିଲାଣି କାମ
ମୁଦା ନ ହେଲା ଦେଉଳ,
କାଳ-ଅତିକ୍ରମେ   ରାଜା ନରସିଂହ
ଦାରୁଣ ଦୁଃଖେ ଆକୁଳ ।

ଦୁଇ ଦିନ ମଧ୍ୟେ   ପୂରିବ ଦେଉଳ
ନ ରହିବ କିଛି ଶେଷ,
'ନ ହେଲେ କାଟିବି   ବଢ଼ାଇଙ୍କ ମୁଣ୍ଡ'
ହୋଇଛି ରାଜା ଆଦେଶ ।

ଦୁଇ ଦିନୁଁ ଦିନେ   ହେଲାଣି ଅତୀତ
ଆଉ କାଲି ଦିନ ବାକି,
ନିରାଶେ କାତର   ସର୍ବେ କାରିଗର
କାମକୁ ନ ପାଏ ଆଖି ।

ମଧ୍ୟ-ଗର୍ଭେ ହେଲା   ଦେଉଳ ପତନ
ରହିଲା ତନ୍ତ୍ରୀ କି ଦୋଷ,
କେଜାଣି କାହାର   ଅପରାଧେ ଅବା
ରାହୁରାଜ କଲେ ରୋଷ !

ଜଳେ ଯେତେ ଯନ୍ତ୍ର ନ ଥିରେ ଦେଉଳ
ନ ବସେ ରତ୍ନ-ନଉଡି,
ଉପାୟ ନ ଦେଖି କାରିଗରଙ୍କର
ହଜିଲାଣି ବୁଦ୍ଧି ବୃତ୍ତି ।

ସ୍ୱାମୁରୁ ଆଦେଶ— ମନ୍ଦିର-ମୁକୁଟେ
ହେବ ଚୁମ୍ବକ ଖଚିତ,
ପ୍ରଭାବେ ଯାହାର ମହୋଦଧି-ବକ୍ଷେ
ନ ଯିବ ଶଙ୍ଖ-ବୋଇତ ।

ବାରଣ ବଢ଼ାଇ ଏକୁଁ ଏକ ସର୍ବେ
ଶିଳ୍ପବିଦ୍ୟା-ବିଶାରଦ,
ଗଢ଼ିଛନ୍ତି କେତେ ଦେଉଳ ଅଟାଳି
ସେତୁ ଦୁର୍ଗ ଜନପଦ ।

ଯେଝା ବୁଦ୍ଧି ବଳେ ଗଢ଼ନ୍ତି ପଥର
ଖଣି ସବୁ ଚଟ୍ଟେ ଢଳେ,
ଦେଉଳ ମୁଣ୍ଡିବା ବୁଦ୍ଧି ନ ଦଶଇ
ହାରନ୍ତି ଏବେ ସକଳେ ।

ଆଜ ନିଶି ଶେଷେ କାଲି ପ୍ରଭାତରେ
ହୋଇବ ରବି-ଉଦୟ,
ପର ଦିନ ରବି ଉଇଁଣ ଦେଖିବେ
ବାରଣ ବଢ଼ାଇ କ୍ଷୟ ।

ଆଜ ସଞ୍ଜବେଳେ କରିବେ ବିଗ୍ଭର
ବସି ସବୁ କାରିଗର,
ଯାଉଛି ମୁଁ ତେଣେ, ରହି ଏଥି ବାବୁ,
ନିଶ୍ଚିନ୍ତେ ବିଶ୍ରାମ କର ।"

ବାପର ବିଷାଦ ଦେଖି ଧର୍ମପଦ
ଆଶ୍ଚର୍ଯ୍ୟ କହଇ ବାଣୀ—
"ସତେ ନରସିଂହ ମହାରାଜ ଦେବ
କାରଣ ବୁଝାଇ ହାଣି ?

ଉତ୍କଳର ଶିଳ୍ପି— କୁଳ-ସୁପ୍ରସିଦ୍ଧ
ଦକ୍ଷ କାରିଗରଗଣ,
ମିଳିଛନ୍ତି ଯହିଁ, ସେ କାର୍ଯ୍ୟ କି କେବେ
ରହିପାରେ ଅପୂରଣ ?

ନ ଥିଲେ ଆପତ୍ତି ଦିଅ ଅନୁମତି
ସଭାସ୍ଥଳେ ଯିବା ପାଇଁ,
ଶିଳ୍ପ-ଗୂଢ଼ ପ୍ରଶ୍ନ ଶୁଣିବି, ଦେଖିବି
କାରିଗର ଜାଣି ନାହିଁ ।"

ବାପ ମୁଖ ଦେଖି ତତକ୍ଷଣେ ତହୁଁ
ଚାଲିଗଲେ ସଭାସ୍ଥଳେ,
କଲେ ତର୍କ ସୂକ୍ଷ୍ମ ଉକ୍ତି ପ୍ରତ୍ୟୁକ୍ତି
ଦେଖି ବୁଦ୍ଧି କଉଶଳେ ।

ରଥ ଦେବାଳୟ— ଗଠନ-ନିର୍ଣ୍ଣୟ
ଚୁମ୍ବକରି ତତ୍ତ୍ୱମାନ,
ବୃଦ୍ଧ ଶିଳ୍ପିଗଣେ କଲେ ଆଲୋଚନା
ଦେଖାଇ ଶାସ୍ତ୍ର-ପ୍ରମାଣ ।

ଗଲା ଅଧଯାଏ ଗୃଳକ୍ଷ ବର୍ଷର
ନ ହେଲା କିଛି ମୀମାଂସା,
ଉପାୟ ନ ପାଇ ବାରଣ ବଢ଼େଇ
ଗୁଡ଼ିଲେ ପରାଣ ଆଶା ।

ଯୋଡ଼ି କର ବେନ ସ୍ୱବନୟ ବାଣୀ
କହେ ଶେଷେ ଧର୍ମପଦ—
"ନୀଳାଚଳେ ଯେବେ ସତ୍ୟ ଜଗନ୍ନାଥ,
ନ ହେବ କିଛି ଆପଦ ।

ଏକାମ୍ର-କାନନେ ସତ୍ୟେ ପ୍ରତିଷ୍ଠିତ
ଯେବେ ପ୍ରଭୁ ଲିଙ୍ଗରାଜ,
ନ ସହିବ କେବେ ନିନ୍ଦା ଅପଖ୍ୟାତି
ଉତ୍କଳ-ଶିଳ୍ପି-ସମାଜ ।

ଯାଗାନଳୁଁ ଯେବେ ସତ୍ୟ ବେଦମନ୍ତ୍ରେ
ଉଠିଥିବେ ଖାରଜାଙ୍କି,
ମୁଣ୍ଡ କଟା ହୋଇ ନ ମରିବେ ଏଥି
କେବେ ବାରଶ ବଢ଼ାଇ ।

ମୁଁ ଅତି ସାମାନ୍ୟ ଶିଶୁ ଅକିଞ୍ଚନ
ଜାତ ବିଶ୍ବକର୍ମା-କୁଳେ,
ଶିଳ୍ପି-ସାମନ୍ତଙ୍କ ହେବ ଯେବେ ଆଜ୍ଞା
ଦ୍ୱାର ଦେବି ଏ ଦେଉଳେ ।

ଦିନକ ମଧ୍ୟରେ ମୁଦିବି ଦେଉଳ
ମନେ ହୁଏ ମୋ ବିଶ୍ୱାସ,
ମାଗେଁ ଏ ଆଦେଶ ଶିଳ୍ପି-ସାମନ୍ତଙ୍କ
ଚରଣେ ମୁଁ ହୀନ ଦାସ ।"

ବାଳକ-ବଚନ ଶୁଣି ସଭାଜନ
ବିସ୍ମିତ ହେଲେ ସକଳ,
କହିଲେ, "ଏ କଥା ଅତି ଅସମ୍ଭବ
ଶିଶୁ-ସ୍ୱଭାବ ଚପଳ ।"

ଅଭିମାନୀ କେହୁ କହଇ ଗରବେ,
"ଉଚିତ ଆମ ମରଣ,
ଦିନକରେ ଯେବେ ଏକା ଏ ବାଳକ
କରେ ଦେଉଳ ପୂରଣ ।"

ଅନ୍ୟ ବୋଲେ, "ଗୁଡ଼ି ଈର୍ଷା ଅହଙ୍କାର
ନାହିଁ ଏଥି ଅପମାନ,
ପୂରୁ ଦେବାଳୟ, ରହୁ ରାଜଦ୍ୱାରେ
ଶିଳ୍ପିକୁଳ-ସନମାନ ।"

"ଗୋପନେ ଯଦ୍ୟପି ନ ହେବ ଏ କାର୍ଯ୍ୟ
ଲୋକରେ ପଡ଼ିବ ଜଣା,
ବନ୍ଧା ହେବ ଶାଢ଼ୀ ଏ ବାଳକ ମୁଣ୍ଡେ
ଆମ ମୁଣ୍ଡ ହେବ ହଣା ।"

ସପକ୍ଷେ ବିପକ୍ଷେ କହିଲେ ଏପରି
କେତେ କଥା କେତେ ଜଣ,
ଅବଶେଷେ ଜଣେ ବୃଦ୍ଧ ଶିଳ୍ପୀ ଭଣେ,
"ଶୁଣ ଭାଇ ସଭାଜନ !

ହେଲେ ହେଁ ବାଳକ ଶିଳ୍ପିକୁଳେ ଜାତ
ମୁଦିବ ଯେବେ ମନ୍ଦିର,
ରହିବ ଉତ୍କଳେ ଶିଳ୍ପି-ଗଉରବ
ଯାଉପଛେ ଆମ ଶିର ।

ପ୍ରତିଜ୍ଞା ଏହାର ଅସମ୍ଭବ ବୋଲି
ମନେ ବିଚାର ନ କର,
କାହାକୁ କି ଶକ୍ତି ଦେଇଛନ୍ତି ପ୍ରଭୁ
ଜାଣିବ ତା କାହିଁ ନର ?

ହୁଏ ଶିଶୁମୁଖେ ସତ୍ୟ ପରକାଶ
ବାଳକେ ବଳ-ଉଦୟ,
ଅସମ୍ଭବ ହୁଏ ସମ୍ଭବ ଜଗତେ
ଦୟା କଲେ ଦୟାମୟ !

ଧ୍ରୁବ ପ୍ରହଲ୍ଲାଦ ପୁରାଣ ପ୍ରବାଦ
କବି-କଳ୍ପନା ନ କହ,
କାଳେ କାଳେ ଶିଶୁ ଅସାଧ୍ୟ ସାଧିବ
ହେଲେ ପ୍ରଭୁ ଅନୁଗ୍ରହ ।

ଶୁଣିଛ ତ ସର୍ବେ ଅଭିମନ୍ୟୁ କଥା
ବୀର-ବାଳକ-ବିକ୍ରମ,
ଶୁଣିଛ ଜନମୁଁ ଥିଲେ ଶୁକଦେବ
ବ୍ରହ୍ମଜ୍ଞାନୀ ଅନୁପମ ।

ଶିଶୁ ବଢ଼ି କ୍ରମେ ହୁଏ ଯୁବା ବୃଦ୍ଧ
ଚତୁର ପ୍ରବୀଣ ନର,
ପ୍ରଭାତ ଅରୁଣେ ଲୁଚି ରହିଥାଏ
ମଧ୍ୟାହ୍ନ ତେଜ ପ୍ରଖର ।

କାଲି ଦିନ ରାତି ରହିଅଛି ବାକି
ବତ୍ସରକୁ ନାହିଁ କାଳ,
ଯାହା କରିବାର ସ୍ଥିର କର ଏବେ
ଆଜ ଅଧିକ ନ ଭଲ ।

ଦଇବ ବିଧାନେ ଏ ବାଳକ ଏଥି
ଯଥାକାଳେ ଉପଗତ,
ଛାଡ଼ିଦେବା ଏହା ହାତେ ବାକି କାର୍ଯ୍ୟ
କର ସର୍ବେ ଏହି ମତ ।”

ଏଣ୍ଡପର ବହୁ ବୃଗ୍ଭର ଶେଷରେ
ସ୍ଥିର କଲେ ଶିଳ୍ପିଗଣ,
କରନ୍ତୁ ବାଳକ କାଲି ଦ୍ୱବାଭ୍ରେ
ଆରେ ମନ୍ଦର ବାକ୍ଷଣ ।

କାଲି ସନ୍ଧ୍ୟାଯାଏ ଲଟିବା ସରବେ
କାମ ନ ହେଲେ ପୂରଣ,
ସମର୍ପି ଦେଉଳ ବାର ଶତ ଶିର
ବାଳକେ ଯିବା ଶରଣ ।

ବାଳକେ ସରବେ କଲେ ଧନ୍ୟ ଧନ୍ୟ
ଭାଜଲା ସଭା ସେ ଦ୍ଦନ,
ବାରଣ ବଢ଼ାଇ ଲାଗିଲେ କାମରେ
ନବ୍ୱଶେ ମୁଖ ମଳନ ।

( ୪ )

ତହିଁ ଆରଦ୍ଦନ ଧର୍ମପଦ ଦେଖେ
ଦେଉଳ ଗଠନ ସ୍ଥିତ,
ପରଖେ ପତନ ପୀଢ଼ ଖମ୍ବ କୋଣ
ଆଦ୍ୟ ପ୍ରାନ୍ତ ଅବସ୍ଥିତ ।

ବାଉଣ ବଡ଼ାଇ ଲାଗିଛନ୍ତି କାମେ
କରି ପ୍ରାଣ ପ୍ରାୟଶ୍ଚିତ୍ତ,
ଯୁହୁଁ ଯୁହୁଁ ଦିନ ହେଲା ଅବସାନ
ରବି ହେଲେ ଅସ୍ତମିତ ।

ନ ସରିଲା କାମ ନ ଦିଶଇ ଆଶା
ରାତି ମଧ୍ୟେ ପୂରିବାର,
ବାରଣ ବଢ଼ାଇ ମୁଣ୍ଡେ ହାତ ଦେଇ
ବସିଲେ ତେଜି ଆହାର ।

କହେ ଧର୍ମପଦ, "ଆଜ୍ଞା ହେଲେ ମତେ
କାମେ ଦେବି ଏବେ ହାତ,
ପ୍ରଭୁ ଦୟା କଲେ ପୂରିବ ଦେଉଳ
ନ ହେଉଁ କାଲି ପ୍ରଭାତ ।"

ବାଉଣ ବଢ଼ାଇ କଲେ ଧନ୍ୟ ଧନ୍ୟ
ଦେଲେ ସର୍ବେ ଆଶୀର୍ବାଦ,
"ଯାଅ ବାବୁ ଯାଅ ବିଳମ୍ବ ନ କର"
କହି କଲେ ଉଚ୍ଚ ନାଦ ।

"ରହୁ କୂଳମାନ ପୂରୁ ନରସିଂହ-
ନୃପତି ମନ କାମନା,
ବାର ବରଷର ବଢ଼ାଇ ପୁଅର
ହେଉ ଜାରତି ଘୋଷଣା ।"

( ୪ )

ଆରମ୍ଭିଲା କାମ ଦେଉଳ ଶିଖରେ
ଏକ ଲକ୍ଷ୍ୟେ ଧର୍ମପଦ,
ଆଶାର ଆନନ୍ଦେ କାରିଗରେ ଏଣେ
ଆଶଙ୍କା କଲେ ଆପଦ ।

ବାଳକ କରଣୀ ନଷ୍ଟେ ଯିବେ ଜାଣି
ନରସିଂହ ଗଜପତି,
ଏ ବାଳକ ମୁଣ୍ଡେ ବନ୍ଧା ହେବ ଶାସ୍ତି
ଘଟିବ ଆମ ବିପତ୍ତି ।

ଯଥା ସମୟରେ ପୂରିବ ଦେଉଳ
ଏହି ମାତ୍ର ଆଶ୍ୱାସନା,
ପରାଣ-ଭୟରେ ସବୁ କାରିଗରେ
କରନ୍ତି ନାନା ଭାବନା ।

ବସି ଏକଠାଇଁ ବାରଣ ବଢ଼ାଇ
ଆତଙ୍କେ କାଟନ୍ତି ନିଶି;
ଏହି ସମୟରେ ପୂରିଲା ଦେଉଳ,
ଅଗ୍ର-କୁମ୍ଭ ଗଲା ଦିଶି ।

ହରଷ-ବରଷାରେ ଘୁହିଁଲେ ସକଳେ
ନିରେଖି ଦେଉଳ ଚୂଳେ,
ସାଥି ଆଉଁ ଆଉଁ ଓହ୍ଲାଇ ମିଳିଲା
ଧର୍ମପଦ ତାଙ୍କ ତୁଲେ ।

( ୬ )

ଦେଖି କାରିଗରେ କରନ୍ତି ପ୍ରଶଂସା
ନାହିଁ କାହା ମନେ ସୁଖ,
ପଚ୍ଛରେ ବାଳକ, "କପାଇଁ ବଣନ୍ତି
ଆପଣ ସର୍ବେ ବିମୁଖ ?

ଦରବିକସିତ କମଳ ସରସେ
କହିଁ ତୁମ ବଜ୍ରପାତ ?
ଉଲ୍ଲସିତ ପ୍ରାଣେ କାହିଁକି କାରଣେ
ଅକସ୍ମାତେ କଷାଘାତ ?"

ଜଣେ ବୃଦ୍ଧ ଶିଳ୍ପୀ କହନ୍ତି ନରେପି
ସମସ୍ତଙ୍କ ମନକଥା—
"ତୁ ଗଢ଼ିଲୁ ଦେଉଳ, ହେବ ତୁମ ଯଶ
ନ ରହିବ ଆମ ମଥା ।"

ନ ଶୁଣୁ ଅଧିକ କହଇ ବାଳକ
"ମୋର ସେ ଯଶେ କି ଫଳ ?
ଯେବେ ଶିଳ୍ପିକୁଳ ବାର ଶତ ଫୁଲ
ଝାଉଁଳି ପଡ଼ିବେ ଭଳ ।

ମୁଁ ଶିଳ୍ପିକୁଳର ଅଧମ ତନୟ
ଜାତିଭାଇଙ୍କ କଙ୍କର,
ଦେଉଳ ପୂରଣେ ନାହିଁ ମୋ କରଣୀ
ସେସବୁ କାର୍ଯ୍ୟ ତୁମ୍ଭର ।

ଜାତିଭାଇଙ୍କର ଆଦେଶେ ପିତା ମୁଁ
କଲ କାର୍ଯ୍ୟ ସମ୍ପାଦନ,
ଜାତିପୁଅଙ୍କର ମୁଣ୍ଡ ଗଲେ, ମୋର
ଜୀବନେ କି ପ୍ରୟୋଜନ ?

କାରଣ ବଢ଼ାଇ ମୋର ଜାତିଭାଇ
ଜାଣ ଏ କଥା ନିଶ୍ଚୟ,
ଯାହା ହେବ ହେବ କେବେ ନ ଘଟିବ
ତୁମ୍ଭ ଜୀବନ-ସଂଶୟ,
କେହି ନ ଜାଣନ୍ତି ମୋ ନାମ ଏଠାରେ
ନ ଜାଣିବେ କେହି ତାହା,
ନ ହେଉଁ ଆଜ ଏ ରଜନୀ ପ୍ରଭାତ
ଦେଖିବ ମୁଁ ନିଜ ରାହା ।

ରାତିକେ ଦେଉଳ ପୂରିଲା ଯେପରି
ନ ହେବ ଲୋକେ ପ୍ରକଟ,
ନ ଜାଣିଲେ ରାଜା କି ଅବା ପ୍ରଧାନ
ପଡ଼ିବ କପାଁ ସଙ୍କଟ ?

ପଦ୍ମରେ ମାତର ଅଛୁ ଆଜ ରାତ
ଯାଅ ବାପେ ଶୁଅ କ୍ଷଣେ,
ହେଉଛୁ ବିଦାୟ ଦଣ୍ଡବତ କର
ଜାତଭାଇଙ୍କ ଚରଣେ ।"

( ୭ )

ସେ ଯାହା କୁଟୀରେ ଗଲେ କାରିଗରେ
ବାପ ସଙ୍ଗେ ଧର୍ମପଦ,
କହେ ପୁଅ, "ଏବେ ପୁଚ୍ଛିବି କଥା ଏ
ମନେ ନ ଗଣ ଆପଦ ।

କହିବ ତୁରିତେ ପୁଅରେ ଦାୟ କ
ବାରଣ କରାଇ ଦାୟ,
ଏ ବିଶ୍ୱରେ ହେବ ବାରଣ କରାଇ—
ତ୍ରାଣ-ଉଦ୍ଧାର-ଉପାୟ ।"

ବାପ ମନେ ଭାବେ କେତେ ପାପ ଚିନ୍ତା
ମୁଖେ ଉତ୍ତର ନ ଆସେ,
ଉଭୟ ସଙ୍କଟେ ପଡ଼ି ଯଥା ନର
ଯାଏ ନାହିଁ କେଉଁ ପାଶେ ।

ବାପର ବିଷାଦ ଦେଖି ଧର୍ମପଦ
କହେ ସୁକୋମଳ ଭାଷା,
"ବାରଣ ବଢ଼ାଇ ରହନ୍ତୁ ଜୀବନେ
ଘୁଞ୍ଚୁ ଏବେ ମୋର ଆଶା ।
ଏ ଜଗତେ କାହା ପୁଅ ବା କାହାର,
ସମସ୍ତ ମାୟା ଭିଆଣ;
ସାର୍ଥକ ଜନମ ତାର ଏକା ସିନା
ପର ହିତେ ଯାର ପ୍ରାଣ ।

କହିଛନ୍ତି ମୁନି— 'କୁଳରକ୍ଷା ପେନ
ହେବ ଯେବେ ପ୍ରୟୋଜନ,
ତେଜିବ ଜଣକୁ ହେଲେ ହେଉ ପଛେ
ସେ ଯେତେ ସ୍ନେହଭାଜନ ।

ନ ହୋଇ ବ୍ୟାକୁଳ ଗ୍ରାମହିତେ କୁଳ
ବରଜନ୍ତୁ ସାଧୁଜନ,
ଦେଶହିତେ ଗ୍ରାମ, ଜଗତ କଲ୍ୟାଣେ
କର ଦେଶ ବିସର୍ଜନ ।'

ବାରଣ ବଢାଇ ଆମ ଜାତିଭାଇ
ଶିଳ୍ପିକୁଳ-ଗଳାହାର,
ପାଆନ୍ତୁ ଜୀବନ, ମୋ ଜଣକ ଲାଗି
ମନେ କିଛି ନ ବିଚାର ।

ତେଜ ମୋ ମମତା, ହେବ ନାହିଁ ବାପା
ଦେଖା ଆଜ ଏ ଜୀବନେ,
ଦିଅ ଅନୁମତି କର ଆଶୀର୍ବାଦ
ବିଦା ହେବି ଏହି କ୍ଷଣେ ।"

କହେ ବୃଦ୍ଧ, "ବାବୁ, ବାର ବର୍ଷ ହେଲା
ଛାଡ଼ି ଆସିଅଛୁ ଘର,
ତେତେବେଳେ ତୁହି ହୋଇଥିଲୁ ମାତୃ—
ଗର୍ଭରେ ଚାରି ମାସର ।

ପୁଅ କିବା ଝିଅ ହେଲା କି ଅପତ୍ୟ
କପାଁ ଗର୍ଭ ଗଲା ନାଶ,
ଭାବିବାକୁ ମତେ କେବେହେଲେ ଦଣ୍ଡେ
ମିଳିନାହିଁ ଅବକାଶ ।

କି ଯୋଗରେ ବାବୁ ପହଞ୍ଚିଲୁ ଆସି
କଲୁ ଅସାଧ୍ୟ ସାଧନ,
ଏପରି ସୁଯୋଗ୍ୟ ପୁଅ ପାଏ କରେ
ଅଳପ ଭାଗ୍ୟରେ ଜନ !

ବିଜୁଳି ପରାଏ ଝଟକି ନିମିଷେ
ଏବେ ଲୁଚିଯିବୁ କାହିଁ ?
ଏଡ଼େ ଭାଗ୍ୟର କି ଏହି ପରିଣାମ
ଏହା କି ମୁଁ ଥିଲି ଚାହିଁ ?

କେଉଁ ଜନମେ କାହା ଖାଇବା ପତରେ
ପକାଇଥିଲି ମୁଁ ଧୂଳି,
କାହା ଅଞ୍ଜଳିରୁ ଧନ ହରି ନେଇ
ଦେଲି ତା ହାତେ ଶାଙ୍କୁଳି !

ଅପାର ପାତକେ ପୂରି ରହିଅଛି
ମୋ ପ୍ରାରବ୍ଧ କର୍ମବନ୍ଧ,
ପଲକେ ମୋ ପଥ ଉଜଳି ନୋହିଲେ
କପାଁ ଯିବୁ କରି ଅନ୍ଧ ?

ବାରଣ ବଢ଼ାଇ ଆମ ଜାତିଭାଇ
ନୁହନ୍ତୁ ମୋ ପ୍ରୟୋଜନ,
କୁଳ-ଗଉରବ ସଦା ରହିଥିବ
ଥିଲେ ତୋ ପରି ନନ୍ଦନ ।

ଯାର ଗୁଣରାଶି ଜଗତେ ପ୍ରକାଶି
ରଖେ ଜାତିକୁଳ ମାନ,
ସେପରି ଗୋଟିକ ସଙ୍ଗତେ ନୁହନ୍ତୁ
ଆନ କୋଟିଏ ସମାନ ।”

ତହୁଁ ପୁଅ ବେଗେ ବୋଲେ ଉଦବେଗେ
“ଅଧିକ ନ କହ ଆଉ,
ହେଉଛି ଉଛୁର ଯିବ ଏଠା ଗୁଡ଼
ଏବେ ଗୃହ ଥାଉଁ ଥାଉଁ ।”

"କାହିଁ ଯିବୁ ବାବୁ ଫେଡ଼ି କହ ସବୁ
ରହିବୁ ଟିକ ପରାଣେ ?
ବଞ୍ଚି ରହିଥିଲେ କେବେହେଲେ ଦେଖା
କାହିଁ ହେବ କିଏ ଜାଣେ !"

କହେ ପୁଅ, "ବାପ, ଜୀବନ-ମରଣ
ଲାଗିଅଛି ଅନୁକ୍ଷଣ,
ଜନମ ହୋଇଲେ ଆଗେ ଅବା ପଛେ
ଅବଶ୍ୟ ହେବ ମରଣ ।

କାପୁରୁଷ ପରି ମରିବା ଜଗତେ
ନୁହେ ନର-ପଉରୁଷ,
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।

ମାନବ-ଜୀବନ ନୁହଇ କେବଳ
ବର୍ଷ-ମାସ-ଦିନ-ଦଣ୍ଡ,
କର୍ମେ ଜୀଏଁ ନର, କର୍ମ ଏକା ତାର
ଜୀବନର ମାନଦଣ୍ଡ ।

ମୁହୂର୍ତ୍ତେ ମାତର ଉଜ୍ଜ୍ୱଳ ପ୍ରଖର
ଶିଖା ଟେକି ହୁତାଶନ
ଜଳି ଯେବେ କରେ ଆଲୋକ ଉଦ୍ଦୀପ
ତଉଦିଗେ ବିତରଣ;

ଲଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା'ଆଦର ଯଶ;
କି ଲୋଡ଼ା ତହିଁରେ ରହେ ଯେ ମହୀରେ
କୁତ୍ସିତ ସହସ୍ର ବର୍ଷ ?

କହୁଛି ନିଷ୍ଠୁର ଏ ଜୀବନେ ଆଜ
ହେବ ନାହିଁ ଯେବେ ଦେଖା,
ଜୀଇଁବା ମରିବା କପାଇଁ ପରୁର
ସେ ଦୁଇ କଥା ତ ଏକା ।

ଏ ମୋ ବଡ଼ ଭାଗ୍ୟ ଘଟିଲା ସୁଯୋଗ
ମିଳି ଏଥି ଯଥା ବେଳେ,
ମୁନ୍ଦାଲି ଦେଉଳ କ୍ଷୁଦ୍ର ଶିଳ୍ପତନ୍ତ୍ରେ
ଶିଖିଲି ଯା ଶିଶୁ-ଖେଳେ ।

ବାରଣ ବଢ଼ାଇ ମୋର ଜାତିଭାଇ
ସହି ନିନ୍ଦା ଅପମାନ
ମଲେ ଯେବେ ଏଥି, କି ସୁଖ ମୋହର
କରି ମନ୍ଦିର ନିର୍ମାଣ ?

ବାରଣ ବଢ଼ାଇ— ରକତ-ରଞ୍ଜିତ
ଯଶ-ସନ୍ମାନ-ଧନ,
ପାଇ ରାଜଦ୍ୱାରେ କହ କି ପ୍ରକାରେ
ବଢ଼ିବ ମୋ ବଡ଼ପଣ ?

ଶାଢ଼ୀ ବାନ୍ଧ ମୁଣ୍ଡେ          ଯିବ ରାଜଦାଣ୍ଡେ
ଦେଖି ଜାତି-କୁଳ-ନାଶ,
କି ରଙ୍ଗେ ରଚିବ          ଏ ଜଘନ୍ୟ ଛବି
ଭବିଷ୍ୟତ ଇତିହାସ !

ଦେଉଳ ଅମୂଦା          ରହିବ ମରିଥାନ୍ତେ
ଯେବେ ସବୁ କାରିଗରେ,
ମୋ କର୍ମ-କୌଶଳେ          ଲଜ୍ଜା ଅପମାନ
ନ ଆନ୍ତା ତାଙ୍କ ମୁଖରେ ।

ଉତ୍କଳର ଶିଳ୍ପି—          କୁଳ ଇତିହାସେ
ନ ରହୁ ଏ କଳାଦାଗ,
ତେଣୁ ସ୍ୱଚ୍ଛମନେ          ଏ ଜୀବନ ଲାଗି
କର ବାପା ମୋତେ ତ୍ୟାଗ ।

"ଛଞ୍ଚାଣ-କପୋତ"—          ଅଦ୍ଭୁତ ଚରିତ
ଶୁଣିଛ ମହାଭାରତେ,
ପରାଣ ବିକଳେ          କପୋତ ବ୍ୟାକୁଳେ
ମିଳିଲା ଶିବି-ପୁରତେ ।

କାଶୀ-ନରପତି          କପୋତ-ବିପତ୍ତି
ଦେଖି ପାଇଲେ କଷଣ,
ଯେବେ ଯଜ୍ଞାଗାରେ          ଉଡ଼ିଣ ଆତୁରେ
ପଶିଲା ପକ୍ଷୀ ଶରଣ ।

ଯାଚକ-ଯାଚଞ୍ଚା ନ କଲେ ପୂରଣ
ଯଜ୍ଞଫଳ ଯାଏ ନାଶ,
ସଞ୍ଚାଣ ବଧିଲେ ହିଂସା ମହାପାପ
ଆବର କରିବ ଗ୍ରାସ ।

ଉଭୟ ସଂକଟେ ନ ଦେଖି ଉପାୟ
ଶିବି ରାଜା ମହାମତି,
ବେନି ପକ୍ଷୀ ମଧ୍ୟେ ଉଚ୍ଚ ହୋଇ ସଧେ
ସଞ୍ଚାଣେ କଲେ ବିନତି—

'ଦେଖ ପକ୍ଷିରାଜ, ଯାହା ଇଚ୍ଛା ମାଗ
ରଖ କପୋତ ଜୀବନ';
କହଇ ସଞ୍ଚାଣ, 'ଲୋଡ଼ା ନାହିଁ ଧନ,
ମୁଁ ଯେ କ୍ଷୁଧା-ଅବସନ୍ନ ।

କପୋତ ଉଦ୍ଧାରେ ଉଦାର ଅନ୍ତରେ
କର ଯେବେ ଅଭିଳାଷ,
ନିଜ ଅଙ୍ଗୁ କାଟି ତୁଳିଦିଅ ମୋତେ
କପୋତ ସମାନ ମାଂସ ।'

ହରଷେ ନୃପତି ଦେଖାଇଣ ସ୍ଫୂର୍ତ୍ତି
କାଟିଦେଲେ ମାଂସ ଖଣ୍ଡେ,
ପରିମାଣେ ମାଂସ କପୋତ ସମାନ
ହେଲା ନାହିଁ ତୁଳାଦଣ୍ଡେ ।

ଆଉ ଖଣ୍ଡେ ପୁଣି    କାଟିଲେ ନୃମଣି
ସମ ନୋହିଲା ନିକତି,
ଖଣ୍ଡେ ଖଣ୍ଡେ କ୍ରମେ    କଲିଜା କାଟିଲେ
କପୋତେ ପ୍ରକାଶି ପ୍ରୀତି ।

ନୃପ-ଦୟାପଣ    ଦେଖି ସେ ସଞ୍ଚାଣ
କଲା ଶେଷେ ଜୟନାଦ,
ତେଜିଲା କପୋତେ    ଗଲା ନିଜ ପୁରେ
ଦେଇ ଦିବ୍ୟ ଆଶୀର୍ବାଦ ।

କପୋତର ହିତେ    ଶିବ ଶୁଦ୍ଧଚିତ୍ତେ
କଲ ଏ ଆତ୍ମ ଉତ୍ସର୍ଗ,
ଇହ ପରଲୋକେ    ଲଭିଲେ ଅକ୍ଷୟ
ଧର୍ମ ଆଦି ଚତୁର୍ବର୍ଗ ।

ଏ ଜଗତ ବାପ,    ମହାମଖଶାଳ,
ନରନାରୀ ଯଜମାନ;
ସେହି କୃତୀ, ଯେହୁ    ପରହିତେ କରେ
ଜୀବନ ଆହୁତି ଦାନ ।

ଭୁବନ-ବିଦିତ    ଦଧୀଚି-ଚରିତ
ପୁରାଣେ ତ ଅଛି ଶୁଣି,
କହି ସ୍ୱସ୍ତି ସ୍ୱସ୍ତି    ଦେଲେ ନିଜ ଅସ୍ଥି
ବିଶ୍ୱହିତେ ମହାମୁନି ।

ପରବ୍ରତେ ପ୍ରାଣ       ଉତ୍ସର୍ଗି ପୂରବେ
କେତେ କେତେ ମହାଜନ,
ଲଭିଛନ୍ତି ତ୍ୟାଗେ       ପରାଣ-ପୂର୍ଣ୍ଣତା
ମରଣେ ନିତ୍ୟ ଜୀବନ ।

କୋରକିତ ପ୍ରାଣ       ଫୁଟେ ପ୍ରେମ-ସରେ
ପବନେ ମିଶାଏ ବାସ,
ବିଶ୍ୱବ୍ୟାପୀ ଇହ—       ଉଜ୍ଜ୍ୱଳ ଆଲୋକେ
ଝରୁ ସ୍ନିଗ୍ଧ ମନ୍ଦହାସ ।

ବାରଣ ବଢ଼ାଇ       ରହିଛନ୍ତି ଯହିଁ
ଏବେ ତୁମ ମୁଖ ପ୍ରତି,
ପୁତ୍ର-ସ୍ନେହ-ମାୟା       ତୁଟାଇଲେ ତୁମ୍ଭେ
ଯିବେ ସକଳେ ବରତି ।

ବାରଣ ବଢ଼ାଇ       ମୁହିଁକୁ ଅନାଇଁ
ମୋ ମମତା ଏବେ ଛାଡ଼,
ଜାଣ ଏ ଦେଉଳୁଁ       ଗଡ଼ ମରୁଛି ମୁଁ
ଭାଙ୍ଗି ମଥା ବୁକୁହାଡ଼ ।

ତୁହିଁ ଏ ଦେଉଳେ,       ତୁହିଁ ଜାତିକୁଳେ,
ଛାଡ଼ ମନୁ ବୃଥା କଷ୍ଟ,
ବିଶ୍ୱର ଜନମ       ପାଇନାହିଁ ମୁହିଁ
ହୋଇଅଛି ଗଭ୍ରୁ ନଷ୍ଟ ।

କରୁଛ ଭାବନା, ନ ହେବ ମୋ ବନା
ବଂଶ-ରକ୍ଷା ତୁମ୍ଭ ଅନ୍ତେ,
କର ହେ ବିଚାର କାହା ବଂଶ ଚିର
ରହିଛି ବା ଏ ଜଗତେ ?

କେତେ ମହାଜନ ଅସାଧ୍ୟ ସାଧନ
କରିଗଲେ କାଳବଳେ,
କାହିଁ ତାଙ୍କ ବଂଶ ? ଅଛି ମାତ୍ର ଯଶ
ଆଜଯାଏ ମହୀତଳେ ।

ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟ ବିଧି,
ଏକର ଯା କ୍ଷୟ ଅନେକ ଉଦୟ,
ଅନେକ ଏକର ସିଦ୍ଧି ।

ବଂଶ ଗଲେ ଯାଉ ଜାତି ବୃଦ୍ଧି ପାଉ,
ସାଧ ଏ ଉଦାର ନୀତି,
କୋଣାର୍କ ଦେଉଳ ଗାଉ ଚିରକାଳ
ତୁମ୍ଭ ପୁଣ୍ୟ ତ୍ୟାଗ-ଗୀତି ।

ପରେ ଦୟାବନ୍ତ ସତ୍ୟ ରକ୍ଷା ପାଇଁ
ପୂର୍ବେ କେତେ କେତେ ଲୋକ,
କାଟିଛନ୍ତି ନିଜ ହାତେ ପୁଅମୁଣ୍ଡ
ମୁହୂର୍ତ୍ତେ ନ କରି ଶୋକ ।

ବିହିତ କରମ . ମାନବ ଧରମ
ବୀର ଭାବେ ଯେହ୍ନ ସାଧେ,
ସେହି ଧନୁର୍ଦ୍ଧର ରାମ ବୀରବର
ଭବାର୍ଣ୍ଣବେ ସେତୁ ବାନ୍ଧେ ।

ତୁମର ମୋହର ଦେଖା ହନକର,
କହାଁ ଏତେ ମାୟା ମୋହ ?
ତେଜ ମୋ ମମତା ଦେଖାଅ ବୀରତା
କର ନାହିଁ ଜାତି-ଦ୍ରୋହ ।

କହ ମନ ସୁଖେ, 'ନାହିଁ ପୁଏ ଦାୟେ
କାରଣ ବଢ଼ାଇ ଦାୟ',
ଜଗତେ ଏ କଥା ରହୁ କାଳେ କାଳେ
ନେଉଛୁ ଏବେ ବିଦାୟ ।
ପାହି ଆସିଲଣି ଅନ୍ଧାର ରଜନୀ
ନିର୍ମଳ ଦିଶେ ମୋ ପଥ,
ଦିଅ ଆଶୀର୍ବାଦ ଯେମନ ଏ ଜୀବନେ
ଏହି ଶେଷ ଦଣ୍ଡବତ ।"

( ୮ )

ଏତେ କହି ପୁଅ ବାପ-ପଦରଜ
ନେଇ ଲଗାଇଲା ଶିରେ,
ବୃଦ୍ଧ ମୁଖେ କିନ୍ତୁ ବଚନ ନ ଆସେ
ଗଣ୍ଡ ସିକ୍ତ ନେତ୍ର-ନୀରେ ।

ମୂକ ଆଶୀର୍ବାଦ ଇଙ୍ଗିତେ ପ୍ରକାଶି
ସ୍ନେହେ ଚୁମ୍ବିଲା ବଦନ,
ଝୁଲିଗଲା ପୁଅ କ୍ଷଣେ ବୃଦ୍ଧ ତହିଁ
ହେଲା ଶୋକେ ଅଚେତନ ।

ଅରୁଣ-ଆରକ୍ତ- ବରଣେ ରଞ୍ଜିତ
ଦିଶେ ପୂରବ ଆକାଶ,
ଫିଟିନାହିଁ ନିଶା— ଅଙ୍ଗ କଳାଶାଢ଼ୀ
ଫୁଟି ନାହିଁ ଊଷାହାସ୍ୟ ।

ଚନ୍ଦ୍ରଭାଗା-ନୀରେ ପାଦାନ୍ତ ସମୀରେ
ଖେଳଇ ମୃଦୁ ତରଙ୍ଗ,
ଅଦୂର କାନନେ ପହର ପ୍ରମାଣେ
ରବେ କୁମ୍ଭାଟୁଆ ଖଗ ।

ଏ ମୁହଁ ଅନ୍ଧାରେ ବେଳେ ଧର୍ମପଦ
ଝୁଲିଗଲା ଅନ୍ତ ଖରେ,
ଝର-ପଥେ ଚଢ଼ି ଉଠିଲା ତୁରିତେ
ଦେଉଳ ଶିଖ ଉପରେ ।

( ୯ )

ଚୌଦିଗେ ବିସ୍ତୃତ ସାଗର-ସୈକତ
ନିସ୍ତବ୍ଧ ବିଜନ ବେଳା,
ସମ୍ମୁଖେ ଅପାର ନୀଳ ପାରାବାର
ଚିରନ୍ତନ ଊର୍ମି-ଖେଳା ।

ଊର୍ଦ୍ଧ୍ୱେ ସୁଶୋଭିତ ତାରକା-ଖଚିତ
ଅନନ୍ତ ନୀଳ ଆକାଶ,
ହେଲା ଶୁଦ୍ଧପ୍ରାଣେ ଅପୂର୍ବ ଉଦାର
ମହାଭାବ ପରକାଶ ।

ଜଳ ସ୍ଥଳ ନଭ ହେଲା ଏକ ଜୀବ
ଲୋପିଗଲା ବିଚ୍ଛିନ୍ନତା,
ଅନନ୍ତ ଅଭେଦେ ପରମ ନିବେଦେ
ବ୍ୟକ୍ତ ବିଶ୍ୱ-ମହାସତ୍ତା ।

ଜାଗ୍ରତ ହୃଦୟ ମିଶିଗଲା ସେହି
ମହା ଅନନ୍ତ ବିତାନେ,
ଅନ୍ୟ ଭାବ ଭୁଲି ମଣେ ଆପଣାକୁ
ଏକୀଭୂତ ବିଶ୍ୱପ୍ରାଣେ ।

ମୁହୂର୍ତ୍ତକେ ପୁଣି ସେ କ୍ଷୁଦ୍ର ହୃଦୟେ
ସଙ୍କୁଚିତ ବିଶ୍ୱସାର,
ଭିତର ବାହାର କଲା ଏକାକାର
ଅମୃତ ସଙ୍ଗୀତଧାର ।

ହୋଇ ଏକ ଧ୍ୟାନ ମିଳାଇଣ ତାନ
ବିଶ୍ୱ-ସଙ୍ଗୀତ-ଲହରେ,
ଗାଏ ଧର୍ମପଦ ପରମ ଆନନ୍ଦେ
'ଜୟ ଜଗଦୀଶ ହରେ ।'

"ନମୋ ନିରଞ୍ଜନ ନିଖିଳ ନିଦାନ
ବ୍ୟାପ୍ତ ସର୍ବ ଚରାଚରେ,
ପ୍ରଭୁ ଦୟାମୟ ମଙ୍ଗଳ-ଆଳୟ
ଜୟ ଜଗଦୀଶ ହରେ ।

ନମୋ ନିରାକାର ସର୍ବ ବିଶ୍ୱାଧାର
ବ୍ୟକ୍ତ ବାହ୍ୟ ଅଭ୍ୟନ୍ତରେ,
ପ୍ରଭୁ ବିଶ୍ୱପତି ଅଗତିର ଗତି
ଜୟ ଜଗଦୀଶ ହରେ ।

ଧରି ତୁମ୍ଭ ବଳ ବହଇ ଅନିଳ
ଅନ୍ତରୀକ୍ଷେ ନିରନ୍ତରେ,
ଆଦେଶେ ଜଳଧି ନ ଲଙ୍ଘେ ଅବଧି
ଜୟ ଜଗଦୀଶ ହରେ

ତବ ଦିବ୍ୟ ଜ୍ୟୋତି ପରକାଶେ ନିତି
ଗ୍ରହ ତାରା ନୀଳାମ୍ବରେ,
ତବ ପୁଣ୍ୟ ହାସେ କୁସୁମ ବିକାଶେ
ଜୟ ଜଗଦୀଶ ହରେ ।

ନଦୀ ବନ ଗିରି ଶ୍ୟାମ କାନ୍ତି ଶିରୀ
ତୁମ୍ଭରି କଟାକ୍ଷେ ଧରେ,
ଗାଏ ତୁମ୍ଭ ଗୀତି ଏ ବିଶ୍ୱ-ଭାରତୀ
ଜୟ ଜଗଦୀଶ ହରେ ।

ଅନନ୍ତ ମହିମା ଅତୁଲ ସୁଷମା
ବିଶେ ବିଶ୍ୱେ ସ୍ତରେ ସ୍ତରେ,
ତବ ମହାପ୍ରେମ ଖେଳେ ଚରାଚରେ
ଜୟ ଜଗଦୀଶ ହରେ ।

ସେ ମହାମହିମା କି ବୁଝିବ ପ୍ରଜ୍ଞେ,
କ୍ଷୁଦ୍ର ନର କଳେବରେ,
କି ଭାଷାରେ ତବ କରିବି ହେ ସ୍ତବ
ଜୟ ଜଗଦୀଶ ହରେ ।

ଦେଶ କାଳ ସୀମା— ଅଜ୍ଞାତ ମହିମା
ଅଗୋଚର ସୁର ନରେ,
ଏକ ଅଦ୍ୱିତୀୟ ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।

ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀପଦରେ,
ପୂରୁ ତବ ଇଚ୍ଛା ଏ ନର ପରାଣେ
ଜୟ ଜଗଦୀଶ ହରେ ।

ପ୍ରକାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ ଅନ୍ତରେ,
କର ତାହା ସିଦ୍ଧି କରୁଣା-ବାରିଧି
ଜୟ ଜଗଦୀଶ ହରେ ।

ମୋ ହୃଦୟ-ସ୍ୱାମୀ,        ପ୍ରଭୁ ଅନ୍ତର୍ଯ୍ୟାମି,
ଦେଖାଇଛ ଯାହାଁ ଥରେ,
ସେ ଅମୃତ-ଗନ୍ଧ        ଦିଅ ପ୍ରାଣପନ୍ତ !
ଜୟ ଜଗଦୀଶ ହରେ ।

ଚନ୍ଦ୍ରଭାଗା ମୋର        ଘେନ ନମସ୍କାର
ନିଅ ମୋତେ ନିଜ ଅଙ୍ଗେ,
ବନ୍ଧି ମାତୃସ୍ନେହ        ମିଶାଅ ଏ ଦେହ
ଅତଳ ଉଦଧି ସଙ୍ଗେ ।”

ଗାଇ ଏହିପରି        କହି 'ହରି ହରି'
ଡେଇଁଲା ସେ ନଦୀଜଳେ,
ନ ରହିଲା ତାର        ଚିହ୍ନ କି ଆକାର
ଗଲା ମହାସିନ୍ଧୁ ତଳେ ।

ଆଉ ଦିନ ରବି        ଉଇଁଣ ଚୁମ୍ବିଲେ
ସମ୍ପୂର୍ଣ୍ଣ ମନ୍ଦିର-ଚୂଳ,
ନ ଜାଣିଲେ କେହି        କିଏ ସେ ମୁଦିଲା
କୋଣାର୍କେ ଏ ଦେଉଳ ।

ନଦୀ ଗିରି ବନେ        ସାଗର କାନନେ
ମିଶିଗଲା ହାଡ଼ ମାଂସ;
"ଧର୍ମପଦ" ନାମ        କାଳସିନ୍ଧୁ କଲା
ବିସ୍ମୃତି-ଗରଭେ ଗ୍ରାସ ।

ଲୁଚି ରହେ ନାହିଁ ସତ୍ୟ ଚିରଦିନ
କାଲେ ହୁଏ ତା ବିକୃତି,
ନାହିଁ ଧର୍ମପଦ, ଭାଙ୍ଗିଛି ଦେଉଳ,
ଅଛି ଏବେ ଜନଶ୍ରୁତି ।



କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କଦ୍ୱାରା
ମୁଦ୍ରିତ, ୧୯୫୫—୪୦୦୦

